ପଣ୍ଡିତ ଗୋଦାବରୀଶଙ୍କ ମହାନ୍ ଜୀବନଗାଥା ସରଳ ସାବଲୀଳ
ଭାଷାରେ ଗପ ଛଳରେ ଲିଖିତ

---

# ବକୁଳ ବନର ପଣ୍ଡିତ

ଶ୍ରୀ ପରମେଶ୍ୱର ତ୍ରିପାଠୀ



ଓଡ଼ିଶା ବୁକ୍ ଷ୍ଟୋର

# ବକୁଳ ବନର ପଣ୍ଡିତ

ଲେଖକ :
ଶ୍ରୀ ଯମେଶ୍ୱର ତ୍ରିପାଠୀ
ତ୍ରିପାଠୀ ଭବନ, ଆଠଗଡ଼

ପ୍ରକାଶକ :
ଶ୍ରୀ ଗୋବିନ୍ଦ ଚରଣ ପାତ୍ର
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୭୯
ନୂତନ ମୁଦ୍ରଣ : ୧୯୮୭

ମୁଦ୍ରକ :
ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ୍, କଟକ

ମୂଲ୍ୟ—ଚାରିଟଙ୍କା ମାତ୍ର

# BAKULA BANARA PANDITA

By JAMESWAR TRIPATHY
Tripathy Bhawan
Po : Athagarh, Cuttack

Publisher :
GOBINDACHARAN PATRA
Orissa Book Store
Cuttack-753002

New Edition : 1987

Printer :
Sri Radhanath Co-operative Press
Cuttack-753002

Price - Rs. 4/—

## ମହତ ଲୋକ ସେ ସଂଭ୍ରେଙ୍କ ଋଚ୍ୟରେ
## ବଡ଼ ହୋଇ ଯିଏ ସାନକୁ ପଚ୍ୟରେ ॥

ଥିଲେ ଦୁଇଟି ଭାଇ ସାଙ୍ଗ । ଜଣେ ଟିକିଏ ପଛବୁଦ୍ଧିଆ ହେଲେ ଆରଟି କିନ୍ତୁ ଅତି ଚାଲାକ୍ । ଜଣକୁ ଯଦି ଗଛରେ ଚଢ଼ିବାକୁ ଡରଲାଗେ, ଆରଜଣକ ଖଟ୍ ଖଟ୍ କରି ଗଛରେ ଚଢ଼ିଯାଏ । ଜଣେ ଦୁଷ୍ଟଙ୍କର ଶିରୋମଣି ହେଲେ ଆର ଜଣକ ବଡ଼ ସୁଧାର ।

ପଦେ କଥାରେ, ଜଣେ ତୁଳସୀ ହେଲେ ଆରଜଣକ ବନ୍ଧୁଆଡ଼ ।

ବଣରେ ତୁଳସୀ ଗଛ ସହିତ ବନ୍ଧୁଆଡ଼ ଗଛ ଏକାଠି ରହିଲା ଭଳି ଗାଁରେ ପାଠପଢ଼ିଲାବେଳେ ଦୁଷ୍ଟପିଲା ସଙ୍ଗେ ଶିଷ୍ଟପିଲା ମଧ୍ୟ ସାଙ୍ଗସାଥୀ ହୁଅନ୍ତି ।

ଦିନକର ଘଟଣା, ଉଦୁଉଦିଆ ଦି'ପ୍ରହର । ବୈଶାଖ ମାସର ତାଳୁଫଟା ଖରା । ବନ୍ଧୁଆଡ଼ ତୁଳସୀକୁ ଡାକି କହିଲା—ଚାଲ ଯିବା ତୋଟାକୁ । ତୋଟାରେ ଯେଉଁ ଆମ୍ବସବୁ ପାଚିକରି ଓହଳିଛନ୍ତି ନା ··

ତୁଳସୀ ଭୟରେ ଏଡ଼େ ଏଡ଼େ ଆଖିକରି କହିଲା—ଯଦି ଜଗୁଆଳୀ ଦେଖିନେବ ? ତେବେକି···

ତୁଳସୀ ପାଟିରୁ କଥା ଛଡ଼ାଇନେଇ ବକୁଆଡ ବହପ ଦେଖାଇ କହିଲା—ପାଠ—ତୁଟା ଘାଣ ଡରକୁଳା । ଯେମିତ ପାଠ ଆସୁଥିଲେ ମଧ୍ୟ ଭୟରେ କହି ନ ପାରି ମାଡ଼ ଖାଉଛୁ, ସେଇମିତ ଏକୁଟିଆ ମଶାଣି ବାଟେ ଗଲେ ତୋତେ କୁଆଡ଼େ ଭୂତ ଖାଇ ଗୋଡ଼ାଉଛି । ଏହାପରି ଡରକୁଳା ହେଲେ ବଡ଼ହେଲେ ତୋଦ୍ୱାରା କିଛି ହେବନାହିଁ । ଏ ଟାଇଁଟାଇଁଆ ଖରବେଳେ ଜଗୁଆଳି କ'ଣ ତୋଟାରେ ଥିବ ? ଯଦି ତୋଟା ଜଗିବାକୁ ଆସିଥିବ; ତେବେ କ'ଣ ଶୋଇପାଇ ନ ଥିବ ? ତୁ ନଈ ନ ଦେଖୁଣୁ ଏପରି ଲଙ୍ଗଳା ହେଉଛୁ କାହିଁକି ?

ଆଖି ଆଗରେ ନାଚୁଛି ନାଲି ଟେଧ ଟେହ ପାଚିଲା ଆମ୍ବ । ସେଥିରେ ବକୁଆଡ ଏପରି ଚିହାଇ କରି କହିଲାଣି । ତୁଳସୀ ବାଧହୋଇ କହିଲା—ହଉ, ଚାଲ୍ ।

ଦୁଇ ସାଙ୍ଗ ଆମ୍ବତୋଟାକୁ ଗଲେ । ବକୁଆଡ ଆମ୍ବ ଗଛରେ ଖପ୍ ଖପ୍ ହୋଇ ଚଢ଼ିଗଲା । ତଳେ ତୁଳସୀ ଅଣ୍ଟି ପାତି ଠିଆହେଲା । ଆମ୍ବ ଛିଣ୍ଡାଇ ଗଛ ଉପରୁ ବକୁଆଡ ତୁଳସୀ ଅଣ୍ଟିକୁ ଟକ୍‌ଟାକ୍ କରି ପକାଇଲା ।

ଆମ୍ବ ପଡ଼ିବା ଶବ୍ଦ ଜଗୁଆଳୀ କାନରେ ଯେମିତ ପଡ଼ିଛି ନା ସେ କେଉଁଠାରେ ଲୁଚିକରି ବସିଥିଲା, ଆସି ହାଜର । ହାତରେ ତାହାର ଚତାଏ ଉଣ୍ଡା ଠେଙ୍ଗା । ଗଛ ଉପରକୁ ଚାହିଁଲା, ଗଛ ଉପରେ ବକୁଆଡ ଅଛି । ରାଗରେ ଆଖି ନାଲି ନାଲି କରି ଜଗୁଆଳୀ ଧମକାଇ ପଚାରିଲା—ପାଠପଢ଼ୁଛ କ'ଣ ଚୋରି କରିବା ପାଇଁ ? ଭଲମନ୍ଦକୁ ବାଟ ଅଛି ତ ଶୀଘ୍ର ଗଛରୁ ତଳକୁ ଓହ୍ଲାଇ ଆସ ।

ବଚ୍ଛୁଆଡ଼ ଗଛ ଉପରୁ ଥାଇ କହିଲା—ଦେଖ୍—ମୁହଁସମ୍ଭାଳି କଥା କହ । ମୋ ହାତରେ ଆମ୍ବ ଫାମ୍ବ କିଛି ଦେଖୁଛ ?



ଏତେବେଳେ ତୁଳସୀର ଅବସ୍ଥା ଯାହା ହୋଇଥିବ ବିଚାର କର ? ଆଉ ଯିଏ ହୋଇଥିଲେ ଆମ୍ବତକ ତଳେ ଫୋପାଡ଼ି ଛୁ ମାରିଥାନ୍ତା; କିନ୍ତୁ ତୁଳସୀ ବଚ୍ଛୁଆଡ଼କୁ କହିଲା—ଆ—ତଳକୁ ଓହ୍ଲାଇ ଆସ । ତୋ ଆମ୍ବ ତୁ ନେ···

ଏହାପରେ ଯାହା ଘଟିଥିବ ପିଲାମାନେ ଅନୁମାନ କରି ପାରୁଥିବ । ବଚ୍ଛୁଆଡ଼ିର ପ୍ରକୃତି ତ ଲୁଣ୍ଠେଇ ହେବା । ସେ ତେଣ୍ଟାରୁ ଆସି ତୁଳସୀ ସଙ୍ଗରେ ପ୍ରସ୍ତେ ଧୂମ ଲଗାଇଲା ।

ଯିଏ କେହି ଭାବିବା କଥା—ଦୁଇ ସାଙ୍ଗଙ୍କ ଭିତରେ ଆଉ ସଂପର୍କ ନ ଥିବ । ସବୁଦିନ ପାଇଁ ଅପଡ଼ ହୋଇ ଯାଇଥିବ ।

ମଙ୍କାର କଥା ତୁଳସୀ କିନ୍ତୁ ବିଲ୍କୁଆଡ଼ଲୁ ଭୁଲିଲା ନାହିଁ । ଦିନ ପରେ ଦିନ ବିତି ଗଲିଲା । ପିଲାଟିରୁ ବଡ଼ଟିଏ ହେଲା । ପାଠ ବହୁତ ପଢ଼ିଲା । ତାହାର ଜ୍ଞାନ ଗାରିମା ଦେଖି ଲୋକମାନେ ତାଙ୍କୁ ପଣ୍ଡିତପଣରେ ଗଣିଲେ । ଏତେ ପାଠ ପଢ଼ି କିନ୍ତୁ ସେ ସରକାରୀ ଚାକେରୀ କଲା ନାହିଁ । ଦେଶସେବାକୁ ଜୀବନର ବ୍ରତ ମଣିଲା ।

ସେତେବେଳେ ଦେଶ ପରାଧୀନ ଥାଏ । ଇଂରେଜି ସରକାରଙ୍କର ବହପ ପାଇ ଗଡ଼ଜାତ ରାଜାମାନେ ପ୍ରଜାମାନଙ୍କ ଉପରେ ଭାରି ଅତ୍ୟାଚାର କରୁଥିଲେ । ବେଠି ବେଗାରର ସୀମା ନ ଥିଲା । ସେଥିପାଇଁ ଲୋକମାନେ ଏକାଠି ମେଳି ବାନ୍ଧି ରାଜାମାନଙ୍କ ବିରୁଦ୍ଧରେ ଆନ୍ଦୋଳନ କରୁଥିଲେ ।

ଏହିପରି ଗୋଟିଏ ଘଟଣା ଆମ ଓଡ଼ିଶାର ଏକ ଗଡ଼ଜାତ ରାଜ୍ୟ ରଣପୁରରେ ଘଟିଯାଇଥାଏ । ପ୍ରଜାମାନେ ଜଣେ ଗୋରା ସାହେବଙ୍କୁ ପ୍ରାଣରେ ମାରି ପକାଇଥାନ୍ତି ।

ଇଂରେଜ ସରକାର ଏହି ହତ୍ୟାକାଣ୍ଡର ପ୍ରତିଶୋଧ ନେବା ପାଇଁ ଲୋକମାନଙ୍କ ଉପରେ ଅକଥନୀୟ କଷଣ ଆରମ୍ଭ କରି ଦେଇଥାଏ । ତୁଳସୀ ସେତେବେଳେ ଓଡ଼ିଶା ପ୍ରଦେଶ କଂଗ୍ରେସ ଦଳର ସମ୍ପାଦକ ଥାଏ । ଲୋକମାନଙ୍କର କରୁଣ କାହାଣୀ ଶୁଣିପାରି ସେ ପ୍ରକୃତ ଘଟଣା ଜାଣିବା ପାଇଁ ରଣପୁରକୁ ବାହାରିଲା ।

ଡ୍ରାଇଭର ଖୁବ୍ ଜୋର୍‌ରେ ଗାଡ଼ି ଚଳାଇ ଯାଉଥିଲା । ଗାଡ଼ି ଭିତରେ ବସିଥାଏ ତୁଳସୀ । ରାସ୍ତାରେ ଏହି ସମୟରେ ହଳେ ବଳଦ ଅଡ଼େଇ ନେଇକରି ଜଣେ ଲୋକ ଯାଉଥିଲା । ଗୋରୁ ଦୁଇଟା ତାହାର ବଡ଼ ହୁରୁଡ଼ା । ପଛରୁ ମଟର ଆସୁଥିବାର ଶୁଣି ଏମିତି ଡରକଲେ ଯେ ଲୋକଟି ଗୋରୁ ଦଉଡ଼ିଟିଙ୍କୁ ଛାଡ଼ିଦେଇ ନିଜ ଜୀବନ ବଞ୍ଚାଇବା ପାଇଁ ରାସ୍ତା ଉପରୁ ଆଡ଼େଇ ହୋଇଗଲା ।

ଡ୍ରାଇଭର ଦେଖିଲା ହୁଏତ ସେ ସତର୍କ ହୋଇ ନ ଥିଲେ ନିଶ୍ଚୟ ଏ ଗୋରୁ ଭିତରୁ ଗୋଟିକ ଉପରେ ଗାଡ଼ି ମାଡ଼ିଯାଇଥାନ୍ତା । ସେ କ'ଣ କଲା, ଗାଡ଼ିଟାକୁ ବନ୍ଦକରି ସେହି ଲୋକକୁ ଗାଳି ଦେବାକୁ ଆରମ୍ଭ କଲା ।

ତୁଳସୀ ସେହି ଲୋକଟିକୁ ଚିହ୍ନିପାରିଲା । ଗାଡ଼ି ଭିତରୁ ଓହ୍ଲାଇପଡ଼ି ତାହାକୁ କୁଣ୍ଢାଇ ଧରିଲା ।

ଭୟରେ ଛାନିଆଁ ହୋଇ ଲୋକଟି ପଳାଇ ଯିବାପାଇଁ ଛାଟିପିଟି ହେଉ ହେଉ କହିଲା—ମୋତେ ଛାଡ଼ି ଦିଅନ୍ତୁ ଆଜ୍ଞା ! ମୁଁ ଆଦୌ ସେହିଦିନ ସେହିଠାରେ ନ ଥିଲି ।

ତୁଳସୀ ହସିଦେଲା । କହିଲା—ମୁଁ କ'ଣ ତେଡେ ହତ୍ୟାକାଣ୍ଡ କଥା ପଚାରୁଛି ? ତୁ ମତେ ଚିହ୍ନିପାରୁ ନାହୁଁ କିରେ ? ତୁ ପରା ମୋର ଅତି ପିଲାବେଳର ସାଙ୍ଗ ହେଉଥାଉ ! ସେହିଦିନ ଖରାବେଳେ ବଗିଚାରୁ ଆମ୍ବ ତୋଳିବା କଥା କ'ଣ ମନରୁ ଏକବାର ପାଶୋରି ଦେଲୁଣି ?

ବିଶୁଆଙ୍କ ମନରୁ ଭୟ ଦୂର ହୋଇଗଲା । ସେ ଆନନ୍ଦରେ ଗଦ୍ ଗଦ୍ ହୋଇ କହିଲା—ତୋର ତ ପିଲାବେଳର ଚେହେରା ଆଉ ନାହିଁ । ମୁଁ ସିନା ବର୍ତ୍ତମାନ କଣ୍ଠସ୍ୱରରୁ ତୋତେ ଠଉରେଇଲି ।



ଗାଡ଼କୁ ନେଇ ଡ୍ରାଇଭର ଗଲା । ତୁଳସୀ ପିଲାଦିନର ସାଙ୍ଗ ସହିତ ଚାଲି

ଚାଲି ଗଲି । ଆଜିକାଲି ଯେଉଁମାନେ ବଡ଼ଲୋକ ହେଉଛନ୍ତି, ସେହିମାନେ ପିଲାଦିନର ଗରୀବ ସାଙ୍ଗମାନଙ୍କୁ ଚିହ୍ନିଲେ ସୁଦ୍ଧା ନ ଜାଣିଥିଲା ପରି ଅଭିନୟ କରନ୍ତି । ରାସ୍ତାରେ ଦୈବାତ୍ ଦେଖା ହୋଇଗଲେ ସତେ କି କ'ଣ ଦେବାକୁ ପଡ଼ିପାରେ ଭାବି ମୁହଁ ଆଡେଇ ଚାଲିଯାଆନ୍ତି; କିନ୍ତୁ ଯିଏ ତୁଳସୀ ତାହାର ଅନ୍ତରରେ ମହକ ସଦାସର୍ବଦା ଥାଏ ।

ଏଇ ତୁଳସୀ ଜଣକ କିଏ ଜାଣିଛ ? ସେ ହେଉଛନ୍ତି ଆମର ପ୍ରିୟ ନେତା ପଣ୍ଡିତ ଗୋଦାବରୀଶ ମିଶ୍ର । ତାଙ୍କ ଜନ୍ମସ୍ଥାନ ପୁରୀ ଜିଲ୍ଲାର ବାଣପୁରରେ ।

ଗୋଦାବରୀଶଙ୍କର ପିତାଙ୍କ ନାମ ଲିଙ୍ଗରାଜ ମିଶ୍ର । ଡାକନାମ ଜଟିଆବାବା । ସେ ଝଡ଼ାଫୁଙ୍କା କରି ରୋଗ ବଇରାଗ ଭଲକରି ଦେଉଥିବାରୁ ଲୋକମାନେ ତାଙ୍କୁ ଏହି ନାମରେ ଡାକୁଥିଲେ ।

ଜଟିଆବାବାଙ୍କ ପୁଅ ବଡ଼ ହଟିଆ ଥିଲେ । ତେଣୁ ବ୍ରାହ୍ମଣ ହୋଇ ପଇତା ଛିଣ୍ଡାଇଦେଲେ । ଜାତି ଅଜାତି ମାନିଲେ ନାହିଁ । ନିଶ ରଖିଲେ । ନିଜର ଜାତକ ଚିରି ଫିଙ୍ଗିଦେଲେ । ଯେହେତୁ ତାଙ୍କର ଜାତକ ନାହିଁ, ତେଣୁ ଅନୁମାନ କରାଯାଏ ସେ ଅଠରଶହ ଚଉରାଅଶି କିମ୍ବା ପଞ୍ଚାଅଶି ମସିହା ଭିତରେ ଜନ୍ମ ହୋଇଥିଲେ ।

---

## ଆଜି ଯେ ରାଜେନ୍ଦ୍ରାସନେ କାଲି ସେ ଫକୀର;
## ଚିରଦିନ ସମାନ ନ ଯାଏ କାହାର ।

ଘରେ ଅଭାବ ସଦାବେଳେ । ଦିନେ ଦିନେ ଅଧା ଉପାସ ରହିବାକୁ ହୁଏ । ଘରର ମୁରବୀ ଯିଏ ସେ ପୁଣି ଏତେ ଦୟାଳୁ ଯେ, ଗାଆଁକୁ ଅତିଥି ଅଭ୍ୟାଗତ ଆସିଲେ ଭିଡ଼ିଆଣି ଘରେ ସ୍ଥାନ ଦିଅନ୍ତି । ଫଳରେ ଦିନେ ଦିନେ ଖାଡ଼ା ଖାଡ଼ା ଉପାସ ବି ରହିବାକୁ ହୁଏ ।

ଘରେ ଭାତ ରନ୍ଧାହେଲେ ବାପ ପୁଅ ଖାଆନ୍ତି । ମାଆ ପିଅନ୍ତି ପେଜ । ନଚେତ୍ ଖାଆନ୍ତି ମାଣ୍ଡିଆ ଜାଉ । ଏଡ଼ିକି ଗରୀବ ଘର ପିଲା ସିଏ !

ଘରର ମୁରବୀ ଉପାସରେ ରହିବେ ସିନା; କିନ୍ତୁ କାହାରି ପାଖରେ ହାତ ପତାନ୍ତି ନାହିଁ । ହେଲେ ଉପାସରୁ ପୁଅଟିକୁ ଏବଂ ପରିବାରକୁ ବଞ୍ଚାଇବାପାଇଁ ପୁଅର ଯିଏ ବୋଉ ସେ କ'ଣ କରନ୍ତେ ? ପଡ଼ିଶା ଘରୁ ଚାଉଳ ଧାର ଆଣନ୍ତି ।

ଦିନ ଦିନକର ଚଳଣି ପାଇଁ ଚାଉଳ ଧାର ଆଣୁ ଆଣୁ ଏହା ସାତ ଆଠ ବର୍ଷର ହୋଇଗଲା । ଅଧିକା ସିନା କୁଆଡ଼ୁ ଆସିଲେ ଶୁଝା ହୁଅନ୍ତା ? ସେତିକ ତ ଆସିବାର ନାହିଁ । ଘରର ମୁରବୀ ଯେତିକି ରୋଜଗାର କରନ୍ତି, ସେତିକ ମରୁଭୂମିରେ ଟୋପାଏ ପାଣି ଭଳି ।

କଥାରେ ଅଛୁ—କରଜ କରିବା ସୁଖ, ଯଦି ମହାଜନ ମାଗିବା ପୂର୍ବରୁ, ତାହା ଶୁଝା ହୋଇଯାଏ । ଏହିଠାରେ ତ ଆଉ ଶୁଝାହେବା ପ୍ରଶ୍ନ ଉଠିଲା ନାହିଁ, ତେଣୁ କରଜ ଉଇହୁଙ୍କା ଭଳି ଦିନକୁ ଦିନ ବରଂ ବଢ଼ି ଚାଲିଲା ।

ଶେଷରେ ଦିନେ ପଡ଼ଶା ଘରର ସ୍ତ୍ରୀଲୋକ କରଜ ଦେଇଥିବା ଚାଉଳକୁ ମାଗି ବସିଲେ । ସାତ ଆଠବର୍ଷ ଧରି ଦେଉଥିବା ଚାଉଳର ମୂଲ୍ୟ ଦୁଇଶହ ଟଙ୍କା ହେଲାଣି ।

ଦୁଇଶହ ଟଙ୍କା ! ସେ ପୁଣି ସେତେବେଳ ସମୟରେ !!

ଭାବେଣି ପଡ଼ିଲା କରଜ କିପରି ଶୁଝାହେବ ? ଶେଷରେ ଆଉ ଧନରେ ତ କରଜ ଶୁଝାହୋଇ ପାରିଲା ନାହିଁ, ପରିଶୋଧ କରାଗଲା ଜନରେ ।

ଜନରେ କରଜ ଶୁଝାହେବା କଥା ଶୁଣି ପିଲାମାନେ ଆଶ୍ଚର୍ଯ୍ୟ ହେଉଥିବ । ସେହି କଥାଟି କହୁଛି—ଶୁଣ ।

ପଡ଼ଶା ଘରର ଝିଅଟିଏ ଥିଲା । କରଜ ଫେରି ପାଇବାର ଆଶା ନ ଦେଖି ପଡ଼ଶା ଘରର ସ୍ତ୍ରୀ ପ୍ରସ୍ତାବ ବାଢ଼ିଲେ ତାଙ୍କ ଝିଅକୁ କରଜ ନେଇଥିବା ସ୍ତ୍ରୀଲୋକ ବୋହୂକରି ଘରକୁ ନଅନ୍ତୁ ।

ଅନ୍ୟ ଉପାୟ ନ ଦେଖି ପୁଅର ମାଆ (ବୋଉ ସେହି ପ୍ରସ୍ତାବକୁ ଗ୍ରହଣ କରି ନେବାପାଇଁ ସତ୍ୟ କଲେ । ତାଙ୍କ ପୁଅର ବୟସ ସେତେବେଳକୁ ମାତ୍ର ଦଶ ବର୍ଷ । ସେ ଅପରପ୍ରାଇମେରୀ ସ୍କୁଲରେ ପଢ଼ୁଥାଏ । ଝିଅଟି ପୁଅଠାରୁ ବୟସରେ ଛଅମାସ ସାନ ।

ସେତେବେଳେ ଓଡ଼ିଶାରେ ବାଲ୍ୟବିବାହ ପ୍ରଥା ପ୍ରଚଳିତ ଥିଲା । ବ୍ରାହ୍ମଣ-ମାନଙ୍କ ଭିତରେ ଉଚ୍ଚ ଓ ନୀଚ ଜାତି ପ୍ରଭେଦ ମଧ୍ୟ ଥିଲା । ପୁଅଘର ଝିଅଘର-ଠାରୁ ଜାତିରେ ବଡ଼ ଥିଲେ । ସେ ଜାତି ବିକ୍ରୀକରି ନୀଚ ଜାତିରେ ବାହା ହେବାରୁ ଉଡ଼ିଗଲା ଖଇ ଗୋବିନ୍ଦାୟ ସ୍ୱାହା ନୀତିରେ କରଜ ଥିବା ଦୁଇଶହ ଟଙ୍କା ଜାତି କିଣା ବାବଦକୁ ଭରଣା ହୋଇଗଲା ।



କରଜ ଟଙ୍କା ସିନା ଶୁଝା ହୋଇଗଲା ବ୍ରାହ୍ମଣମାନେ କିନ୍ତୁ ଅଡ଼ି ବସିଲେ । ସକାଳ ପହରରୁ ପୁଅ ଚନ୍ଦନପାଟି କରି, ବେକରେ ଫୁଲମାଳ ପକାଇ ବରବେଶ ସାଜି ବସିଛନ୍ତି । ଚାହୁଁ ଚାହୁଁ ରାତି ହେଲା କେହି ବରଯାତ୍ରୀ ହୋଇ ଗଲେ ନାହିଁ । ବରଘରଠାରୁ କନ୍ୟାଘର ମାତ୍ର ଅଢ଼େଇହାତ ଦୂର । ଦିନଯାକ ଉପାସ ରହି ରହି ବରଙ୍କୁ ନିଦ ଆସିଗଲା । ସେ ଘୁଘୁଂଡ଼ିମାରି ଶୋଇଗଲେ ।

ବାପ ତ ସତ୍ୟ କରିଛନ୍ତି, ଆଉ ତାଙ୍କର ଉପାୟ କ'ଣ ? ଶେଷକୁ ବରଙ୍କୁ କାଖକରି ବେଦିକୁ ନେବା ଆଣିବା କରାଗଲା । ଅବଶ୍ୟ ଶାସ୍ତ୍ରୀୟ ବିଧିବିଧାନ ସବୁ ପାଳନ କରାଗଲା; କିନ୍ତୁ ପିଏ ବର ସେ ବାହାଘର କେତେବେଳେ ସରିଲା, କିପରି ହେଲା, ତାହା ଆଦୌ ଜାଣି ନାହାନ୍ତି ।

ସବୁଠାରୁ ମଜାର କଥା ବିବାହ ହେବାର ଦଶବର୍ଷ ପରେ ଯେତେବେଳେ ବୋହୂ ଶାଶୁଘରକୁ ପୁଅାଣି ହୋଇ ଆସିଲେ ସେତେବେଳେ ଯୌତୁକ ମାତ୍ର ଆଣିଥିଲେ ତିନୋଟି ଟଙ୍କା । ତାହାର କାରଣ ତାଙ୍କ ବାପାଙ୍କର ପୂର୍ବ ସମ୍ପତ୍ତି ଆଉ ନ ଥିଲା ।

ଏ ବର ଜଣକ କିଏ ପିଲାମାନେ ବୁଝିଲ ? ସେ ହେଉଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର ।

— — —

## ସତ କହିବାକୁ କିଆଁ ଡରିବ
## ସତ କହି ପଛେ ମଲେ ମରିବ ।

“ପୁରୀ ଜିଲ୍ଲା ସ୍କୁଲ ଛାତ୍ରାବାସରେ ଥିଲାବେଳେ ଥରେ ତୁମର ଗୋଟାଏ ଅଧୁଲି ଅଣ୍ଟାରୁ ଖସିପଡ଼ି ହଜିଗଲା । ମନେଅଛି ? ଏଇଟା ସେଇ ଅଧୁଲି । ଅବଶ୍ୟ ଠିକ୍ ସେଇଟା ନୁହେଁ । କାରଣ ସେତେବେଳେ ତାହା ଖର୍ଚ୍ଚ ହୋଇଗଲା; ତେବେ ସେହି ବାବଦକୁ ଏଇଟା ଦେଉଛି । ଅଧୁଲି ପଡ଼ିଗଲା ପରେ ତୁମେ ତ



ଖୋଜି ପାଇଲି ନାହିଁ । ମାତ୍ର ମୁଁ ଦେଖି ରଖିଦେଇଥିଲି । ତୁମେ ଚାଲିଯିବା ପରେ ମୁଁ ତାକୁ ନେଇଗଲି । ମୋ ଅପରାଧ ମାଫ୍ କର ଭାଇ ।" କହି ପିଲାଟି କଲେଜ ଛାତ୍ରାବାସକୁ ବୁଲି ଆସିଥିବା ଆଉ ଗୋଟିଏ ପିଲାକୁ ଅଧୁଲିଟିଏ ବଢ଼ାଇଥିଲା ।

ଛାତ୍ରାବାସର କୋଠରୀ ଭିତରେ ଆଉ ଅନ୍ୟ ସଙ୍ଗୀମାନେ ଜଳ ଜଳ ହୋଇ ଆଶ୍ଚର୍ଯ୍ୟରେ ଚାହିଁ ରହିଥାନ୍ତି । ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ—କେଡ଼େ ସଚ୍ଚୋଟ ପିଲା ! କେତେ ବର୍ଷ ତଳର ଅପରାଧକୁ ଆଜି ସମସ୍ତଙ୍କ ଆଗରେ ମାଗି ଯାଉଛି ।

ରେଭେନ୍ସା କଲେଜ ଛାତ୍ରାବାସକୁ ବୁଲି ଆସିଥିବା ସେହି ପିଲାଟି ଆଉ ପାଠ ପଢ଼ୁ ନ ଥିଲା । ପୁରୀ ଜିଲ୍ଲା ସ୍କୁଲରେ ପାଠ ପଢ଼ୁଥିଲା ବେଳର ଘଟଣା, କାହିଁ କେତେଦିନର ହେଲାଣି । କିଛି ମନେ ପଡ଼ୁନାହିଁ । ଆଗନ୍ତୁକ ପିଲାଟି ଆଶ୍ଚର୍ଯ୍ୟ ହୋଇ ଏହି ପିଲାଟିର ମୁହଁକୁ ନିରୀକ୍ଷଣ କରିବାକୁ ଲାଗିଲା ।

କିଛିକ୍ଷଣ ଚାହିଁବା ପରେ ତା'ର ମନେପଡ଼ିଲା—ଏହି ପିଲା ତାହାର ଉପର ଶ୍ରେଣୀରେ ପାଠ ପଢ଼ୁଥିଲେ । ସମସ୍ତେ ତାହାଙ୍କୁ "ନାଟୁଆ ପିଲା" ବୋଲି ଡାକୁଥିଲେ । ଅବଶ୍ୟ ସେତେବେଳକୁ ସେ ନାଟୁଆପିଲା ଭଳି ଦିଶୁ ନ ଥିଲେ; କିନ୍ତୁ ସେ ଯେତେବେଳେ ନିଜ ଗାଆଁରୁ ପୁରୀ ଜିଲ୍ଲା ସ୍କୁଲକୁ ପାଠ ପଢ଼ିବାକୁ ଆସିଥିଲେ ତାଙ୍କ ମୁଣ୍ଡରେ ଲୁଆଡ଼େ ପେଣ୍ଡାଏ ବାଳ ଥିଲା । ବାଳତକ ଗୋଟିଏ ଗଣ୍ଠି ହୋଇ ପିଠିରେ ଝୁଲୁଥାଏ । କାନରେ ଦୁଇଟା ନୋଳି ପିନ୍ଧିଥାନ୍ତି । ତାଙ୍କର ଏହି ଅଦ୍ଭୁତ ବେଶହେତୁ ଦେଖି ତାଙ୍କର ସାଙ୍ଗସାଥିମାନେ ତାଙ୍କୁ "ନାଟୁଆ ପିଲା" ବୋଲି ଚିଡ଼ାଉଥିଲେ । ପରନ୍ତୁ ତାଙ୍କର ସେହି ରୂପ ଆଉ ଢଙ୍ଗ କେତେଟା ଦିନରେ ବଦଳି ଯାଇଥିଲା; କିନ୍ତୁ ଡାକଟା ସେହିପରି ରହିଯାଇଥିଲା ।

ଏହି ପିଲାଟି ହେଉଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର । ପୁରୀ ଜିଲ୍ଲା ସ୍କୁଲରେ ସେ ଅପରପ୍ରାଇମେରୀ ବୃତ୍ତିକୁ ସମ୍ବଳ କରି ନାମ ଲେଖାଇଥିଲେ । ତାଙ୍କର ଘରର ଅବସ୍ଥା ତ ଆଦୌ ଭଲ ନ ଥିଲା । ତେଣୁ ଛାତ୍ରାବାସରେ ଜମା ଦେଇଥିବା ଟଙ୍କା ସରିଗଲେ ସେ ଉପାସ ରହୁଥିଲେ । ମଣିଷ ଅଭାବରେ ରହିଲେ ବେଳେ ବେଳେ ଏହିପରି ତାହାର ଗୋଡ଼ ଖସି ଯାଇଥାଏ । ଗୋଦାବରୀଶ କିନ୍ତୁ ସେହିଦିନ ଅଧୁଲିଟାକୁ ଲୁଚାଇରଖି ଆଦୌ ଶାନ୍ତି ପାଇପାରି ନ ଥିଲେ ।

କିଛିଦିନ ପରେ ସେହି ପିଲାଟି ପାଠ ନ ପଢ଼ି ତାହାର ନିଜ ଗାଆଁକୁ ଚାଲିଗଲା । ଗୋଦାବରୀଶ ତାହାର ଗାଆଁ ଠିକଣା ଜାଣିଥିଲେ ନିଶ୍ଚୟ ଯାଇ ଅଧୁଲିଟି ଫେରାଇଦେଇ ଆସିଥାନ୍ତେ; କିନ୍ତୁ ଅଭାବ ହେତୁ ଯେଉଁ ଅପରାଧ ସେ କରିଥିଲେ ସେଥିପାଇଁ ସେ କେତେବେଳେ ମନରେ ଶାନ୍ତି ପାଇପାରୁ ନ ଥିଲେ । ସେ ଭାବୁଥିଲେ ମଣିଷର ପ୍ରକୃତି ସିନା ଏହିଭଳି ନଷ୍ଟ ହୋଇଯାଏ ! ତେଣୁ ମାନସିକ ଅଶାନ୍ତିରୁ ରକ୍ଷା ପାଇବା ପାଇଁ ସେ ସମସ୍ତଙ୍କ ଆଗରେ ନିଜର ଭୁଲ ମାନିନେବାକୁ ଆଦୌ ପଛାଇ ନ ଥିଲେ ।

ଏହିପରି ଆଉ ଗୋଟିଏ ଘଟଣା ସେ ମଧ୍ୟ ତାଙ୍କର ଆତ୍ମଜୀବନୀରେ ଲେଖିଛନ୍ତି, "ମହାପୁରୁଷ ନ ହେଲେ କେହି ନିଜ ବିଷୟରେ ଏହିଭଳି ଲେଖନ୍ତି ନାହିଁ ।"

ଘଟଣାଟି ହେଲା—ଥରେ ତାଙ୍କର ସହପାଠୀ ପ୍ରଭାସ ଚନ୍ଦ୍ର ଦୁଇଖଣ୍ଡି ବହି ଶ୍ରେଣୀରେ ଭୁଲରେ ଛାଡ଼ି ଦେଇଗଲା । ଗୋଦାବରୀଶ ସେ ବହି ଦୁଇଖଣ୍ଡି କିଣିପାରି ନ ଥିଲେ । ଦରକାରବେଳେ ଅନ୍ୟଠାରୁ ମାଗି ପଢ଼ୁଥିଲେ । ବହି

ଦୁଇଖଣ୍ଡି ଦେଖି ତାଙ୍କର ଲୋଭ ହେଲା । ସେ କ'ଣ କଲେନା—ବହିର ମଲାଟ ଉପରୁ ସାଙ୍ଗ ପ୍ରଭାସଚନ୍ଦ୍ରର ନାମ ଲେଖାଥିବା ଅଂଶତକ ଚିରି ଫିଙ୍ଗିଦେଲେ । ଏଣିକି ବହି ଦୁଇଟି ତାଙ୍କର ହୋଇଗଲା । ତଥାପି ସେ ବହି ଦୁଇଟି ସମସ୍ତଙ୍କ ଆଗରେ କାଢ଼ି ପଢ଼ିପାରୁ ନ ଥିଲେ । ସଦାବେଳେ ତାଙ୍କ ମନରେ ଡରଥାଏ କାଳେ ପ୍ରଭାସ ତାହାର ବହି ଦେଖିନେବ । କିଛିଦିନ ପରେ ପ୍ରଭାସ ନୂଆ ବହି କିଣିଲା । ପାଠପଢ଼ା ଶେଷକରି ସେ ପୁରୀ ଜିଲ୍ଲା ସ୍କୁଲରୁ ଚାଲିଗଲା ।

ଗୋଦାବରୀଶବାବୁ ଏକାଦଶ ଶ୍ରେଣୀକୁ ଉଠିବାକ୍ଷଣି ଆଉ ଶାନ୍ତିରେ ରହି ପାରିଲେ ନାହିଁ । ସଦାବେଳେ ନିଜକୁ ଅପରାଧୀ ବୋଲି ମଣିଲେ । ତେଣୁ ଦିନେ ପାର୍ଶଲ କରି ସେହି ବହି ଦିଓଟି ଏବଂ ତାହା ସହିତ ଖଣ୍ଡିଏ ଚିଠିରେ ସତକଥା ଲେଖି ପ୍ରଭାସଚନ୍ଦ୍ରଙ୍କ ପାଖକୁ ପଠାଇ ଦେଲେ ।

ପାଠ ପଢ଼ିଲାବେଳେ କିଏ କେତେ ଭୁଲ ନ କରନ୍ତି ? କିନ୍ତୁ ଭୁଲକୁ ସ୍ୱୀକାର କରିଲେ ମଣିଷର ମଣିଷ-ପଣିଆ ବଢ଼େ । ସେ ଆଉ ଅପରାଧ କରିବାକୁ ସାହସ କରେ ନାହିଁ । ଗୋଦାବରୀଶ ନିଜ ଭୁଲକୁ ମାନିଥିଲେ ବୋଲି ମହତ୍ ହୋଇ ପାରିଥିଲେ ।

———

# ଯେ ରହେ ପର ଉପକାରେ
# ତାଂ ଜନ୍ମ ଧନ୍ୟ ଏ ସଂସାରେ ।

—"ଆମ ଦେଶରୁ କେତେଜଣ ଯୁବକ ଶିକ୍ଷକତା ଶିକ୍ଷା କରିବା ପାଇଁ ସରକାରଙ୍କ ବୃତ୍ତି ପାଇ ବିଲାତ ଯିବେ । ମୁଁ ଗୁରୁଆଡ଼ୁ ଆଖିବୁଲାଇ ମନେ ମନେ ତୁମକୁ ଠିକ୍ କରିଛି । କ'ଣ ଯିବ ? ନା, ଜାତି ଯିବାକୁ ଡରିବ ? ମୁଁ ଶୁଣିଛି ତୁମର କୁଆଡ଼େ ଜାତି ଫାତି ଯିବାର ଭୟ ନାହିଁ ?"

ବିହାର ଓଡ଼ିଶା ବ୍ୟବସ୍ଥା ସଭାର ଜଣେ ଓଡ଼ିଆ ସଭ୍ୟଙ୍କର ସେତେ-ବେଳକାର ଏକ ଉଚ୍ଚଶିକ୍ଷିତ ଯୁବକଙ୍କ ପ୍ରତି ଏହି ପ୍ରଶ୍ନ ଥିଲା । ସଦସ୍ୟଙ୍କର ନାମ ସୁଦାମ ଚରଣ ନାୟକ ।

ଯୁବକ ଜଣକ ପଛକଥା ଯେତିକି ମନେ ପକାଉଥିଲେ ଆଗକଥା ସେତିକି ଭାବୁଥିଲେ । ଦିନଥିଲା ଏକଦା ପେଟପୂରା ଓଳିଏ ଖାଇବାକୁ ପାଉ ନ ଥିଲେ । ନିଜର ବୃତ୍ତି ଟଙ୍କା ଏବଂ ଟିଉସନ୍ ଦ୍ୱାରା ଅର୍ଜିତ ଆୟ ଦ୍ୱାରା ସେ ପାଠ ପଢ଼ୁଥିଲେ । ପିନ୍ଧିବାକୁ ଖଣ୍ଡିଏ ବୋଲି ମୋଟ ଲୁଗା ଥିଲା । ସପ୍ତାହକର ଛଅ ଦିନ ସେହି ଲୁଗାଖଣ୍ଡି ପିନ୍ଧୁଥିଲେ । ରବିବାର ଦିନ ଝରକାବାଟେ ସେହି ଲୁଗା ଖଣ୍ଡି ଧୋବା ହାତକୁ ବଢ଼ାଇ ଦେଇ ଘର ଭିତରେ ସନ୍ଧ୍ୟା ପର୍ଯ୍ୟନ୍ତ କବାଟ କିଳି

ରହୁଥିଲେ । ସନ୍ଧ୍ୟାକୁ ଧୋବା ସଜ କାଚ ଲୁଗାଟି ଝିଙ୍କାବାଟେ ଫେରାଇ ଦେଉଥିଲା ।

ପୁଣି ଦିନ ଆସିଛି ପାଠ ପଢ଼ି ପଢ଼ି ଏମ୍. ଏ. ପାଶ୍ କଲେ । ବର୍ତ୍ତମାନ ବିଲାତ ଯିବାପାଇଁ ସୁଯୋଗ ଆସିଛି । ବିଲାତ ଯାଇ ପାଠପଢ଼ି ଫେରି ଆସିଲେ କଲିକତାରେ ଭଲ ପାଦ୍ଧ୍ୟାରେ ମୂକ ବଧିର ବିଦ୍ୟାଳୟରେ ପ୍ରଧାନ ଅଧ୍ୟାପକ ରୂପେ ନିଯୁକ୍ତ ମିଳିବ । ଜୀବନଟା ସାରା କଲିକତା ଭଳି ସହରରେ କଟିଯିବ । ବର୍ତ୍ତମାନ ବିଲାତ ଗଲେ ଶିକ୍ଷା ସଙ୍ଗେ ସଙ୍ଗେ କେତେଗୁଡ଼ିଏ ବିଦେଶ ସ୍ଥାନ ବି ଦେଖି ପାରିବେ ।

ଜୀବନରେ ଏତେବଡ଼ ଲୋଭନୀୟ ଆକର୍ଷଣ କ'ଣ କେହିକେବେ ଏଡ଼ି ଦେଇପାରେ ?

ଯୁବକ ଜଣକ "ହଁ" ଭରିଲେ ।

ବିଲାତ ଯିବା ଏକ ପ୍ରକାର ଠିକ୍ ହେଲା । ଏତେବଡ଼ ଖୁସି ଖବର ଯୁବକ ତାଙ୍କର ବନ୍ଧୁବାନ୍ଧବ ଆତ୍ମୀୟ ଏବଂ ଗୁରୁଜନମାନଙ୍କୁ ନ ଜଣାଇ ରହିପାରିବେ କିପରି ? ତେଣୁ ଜୀବନରେ ଯାହାକୁ ଗୁରୁ ବୋଲି ଧରି ନେଇଥିଲେ ତାଙ୍କ ପାଖକୁ ଏହି ଖୁସି ଖବରଟି ଜଣାଇ ଚିଠିରେ ଲେଖିଲେ, "ଆପଣ ଅନୁମତି ଦିଅନ୍ତୁ—ମୁଁ ଯାଏ ।"

ସେ ପାଖରୁ ଉତ୍ତର ଆସିଲା—"ତୁମେ କଲିକତା ମୂକ ବଧିର ବିଦ୍ୟାଳୟରେ ଶିକ୍ଷକ ହେବାକୁ ଯାଉଛ । ଏଣେ ଓଡ଼ିଶାର ଲକ୍ଷ ଲକ୍ଷ ମୂକ ବଧିରଙ୍କ କଥା କ'ଣ ଭୁଲିଗଲ ?"

ଚିଠିଖଣ୍ଡି ପଢ଼ି ଯୁବକ ଜଣକ ଚମକ୍କି ଉଠିଲେ । ଆଖି ଆଗରେ ସେହି ଗୁରୁଜନଙ୍କର ଚେହେରା ଭାସି ଉଠିଲା । ମନେହେଲା ସତେ ଯେପରି ସେ ପାଖରେ ଠିଆହୋଇ ଏକଥା କହୁଛନ୍ତି ।

ଯୁବକ ଜଣକ ଜୀବନରେ ସବୁକିଛି ଅମାନ୍ୟ କରି ପାରନ୍ତି; କିନ୍ତୁ ଏହି ଗୁରୁଜନଙ୍କର ଆଜ୍ଞାକୁ ଅବଜ୍ଞା କରିପାରନ୍ତି ନାହିଁ । ବିଲାତ ଯିବା ବନ୍ଦ ହେଲା । କଲିକତାରୁ ପୁରୀ ଗାଡ଼ି ଚଢ଼ି ଓଡ଼ିଶାକୁ ଆସିଲେ, ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇଲେ । ପୁରୀ ଜିଲ୍ଲା ସ୍କୁଲରେ ପଦେଓ ପଢ଼ୁଥିଲେ; କିନ୍ତୁ ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇବା ତାଙ୍କର ପ୍ରଥମ ।



ଷ୍ଟେସନ ପ୍ଲାଟଫର୍ମରେ ଓହ୍ଲାଇ ସେ ପନ୍ଦରଶଜଣ ଖଣ୍ଡେ ପିଲାଙ୍କ ସହିତ ଦୁଇ ତିନୋଟି ପରିଚିତ ମୁହଁ ଦେଖିଲେ । ସେଥିରୁ ଜଣକୁ ପଚାରି ଦେଲେ, "କ୍ଲୁଆଡ଼େ ଯିବ ନା କ'ଣ ?"

ପରିଚିତ ବ୍ୟକ୍ତ ହସି ହସି ଉତ୍ତର ଦେଲେ ତୁମେ ଯୁଆଡେ଼ ଯିବ ?

ସେତେବେଳକୁ ଯୁବକ ଜଣକ ବୁଝିପାରିଲେ ଯେ, ତାହାଙ୍କୁ ପାଛୋଟି ନେବା ପାଇଁ ତାଙ୍କର ବନ୍ଧୁ ନୀଳକଣ୍ଠ ଦାସ ଆସିଛନ୍ତି । ପଣ୍ଡିତ ନୀଳକଣ୍ଠଙ୍କ ସହିତ ଆଚାର୍ଯ୍ୟ ହରିହର ମଧ୍ୟ ଥା'ନ୍ତି ।

ଯୁବକ ଜଣକ ବାହାରିଲେ ସତ୍ୟବାଦୀକୁ । ସେଇଠାରେ ତାଙ୍କର ଗୁରୁ ଅଛନ୍ତି । ଦର୍ଶନ କଲେ । ତାଙ୍କ ପାଦତଳେ ପ୍ରଣତ ବାଢ଼ିଲେ । ଓଡ଼ିଶାର ଲକ୍ଷ ଲକ୍ଷ ମୂକ ବଧିରଙ୍କ ମୁହଁରେ ଭାଷା ଦେବାପାଇଁ ତାଙ୍କୁ ବଳାତ ଯିବା ବାଟରୁ ଯେଉଁ ଗୁରୁ ଟାଣି ଆଣିଲେ ସେ ତ ଉତ୍କଳର ମଣି ପଣ୍ଡିତ ଗୋପବନ୍ଧୁ ଦାସ । ତାଙ୍କର ନିର୍ଦ୍ଦେଶରେ ଯୁବକ ଜଣକ ସତ୍ୟବାଦୀ ବନ ବିଦ୍ୟାଳୟରେ ଶିକ୍ଷକ ରୂପେ ଯୋଗଦେଲେ ।

ଏହି ତ୍ୟାଗର କାହାଣୀ ଶୁଣିବା ପାଇଁ ଗପଭଳି ଲାଗୁଥିଲେ ମଧ୍ୟ ସତ । ଯିଏ ଖଣ୍ଡିଏ ମୋଟା ଲୁଗାରେ ଚଳୁଥିଲେ ସେ ତ ପୁଣି ରାଜା ରାଜୁଡ଼ାଙ୍କଠାରୁ ଉପହାର ପାଇଥିବା ମଠା ପିନ୍ଧି ପାଇଖାନାକୁ ଯାଉଥିଲେ । ଏମ୍. ଏ. ପାଶ୍ କରିସାରି ପ୍ରଥମେ ଯେତେବେଳେ ଶହେଟଙ୍କିଆ ନୋଟ୍ ଦେଖିଲେ ସେଥିରେ କୋଇଲା ଗୁଣ୍ଡ ଧରି ଦାନ୍ତ ଘଷିଲେ ।

ପିଲାମାନେ ଏହିଭଳି ଯୁବକକୁ ତୁମେମାନେ ନିଶ୍ଚୟ ପାଗଳ ବୋଲି ଭାବୁଥିବ; କିନ୍ତୁ ପ୍ରକୃତରେ ସେ ଜ୍ଞାନ ପାଗଳ ଥିଲେ । ପିଲାଟି ଦିନରୁ ସେ ଦୁଃଖକୁ ଏତେ ଆପଣାର କରିପାରିଥିଲେ ଯେ, ସୁଖକୁ ତୁଚ୍ଛ ବୋଲି ମନେ କରୁଥିଲେ । ସେ ଭାବୁଥିଲେ ପାଟ ମଠା ପିନ୍ଧିଲେ ମଣିଷ ବଡ଼ଲୋକ ହୁଏ

ନାହିଁ । ପ୍ରକୃତ ମହତ୍ତପଣିଆ ଜଣାପଡ଼େ ସେ କେତେଦୂର ମଣିଷକୁ ଭଲ ପାଇ ପାରିଛି ।

ସେହି ଯୁବକ ଜଣକ ହେଉଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର । ତାଙ୍କୁ ଶିକ୍ଷକ ହେବାକୁ ଉଚିତ ମନେକଲେ ସେହି ବିଷୟରେ ସେ କହନ୍ତି—"ମନୁଷ୍ୟ ଭିତରେ ପଙ୍କ ଅଛି, ପାଣି ଅଛି । ଯେ ଉପରେ ରହି ପିଇବ ସେ ପାଣି ପାଇବ, ଯେ ତଳକୁ ପଡ଼ିଯିବ ତା' ଭାଗ୍ୟରେ ଜୁଟିବ ପଙ୍କ । ଗେହ୍ଲା ଭାଙ୍କୁଡ଼ ପାଣି ପିଅନ୍ତି । ଗୋଡ଼ ଗଡ଼ଶା ପଙ୍କରେ ପେଟ ପୂରନ୍ତି । ଭଲ ଅଧ୍ୟାପକମାନେ ପିଲା-ମାନଙ୍କଠାରୁ ଶ୍ରଦ୍ଧା ଭକ୍ତି ପାଇଥାଆନ୍ତି; କିନ୍ତୁ ଯେଉଁମାନଙ୍କ ପେଟରେ ବିଦ୍ୟା ନ ଥାଏ କିମ୍ବା ଗୁଣ ନ ଥାଏ, ସେମାନେ ଲାଞ୍ଛନା ସହନ୍ତି । କଲିକତା ଆଇନ କଲେଜରେ ପଢ଼ିବା ଫଳରେ ମୋର ଆଖି ଫିଟିଗଲା । ଶିକ୍ଷକ ହେବାଲାଗି ମୁଁ ଜୀବନ ଗଢ଼ୁଥିଲି । ଛାତ୍ରମାନେ ଶିକ୍ଷକଙ୍କଠାରୁ କ'ଣ ଚାହାଁନ୍ତି ମୁଁ ତାହାର ଗୋଟାଏ ଧାରଣା କରିନେଇଥିଲି ।"

———

## ମହାତ୍ମା ସାଧନ ମହାତ୍ମା କଷଣ
## ନ ଯାଏ ଜଗତେ କେବେ ଅକାରଣ ॥

"ଏ ଗୋପବନ୍ଧୁ ଦାସ ମସ୍ତ ସର୍କସ ଖେଳାଳୀ । ଦେଖୁନା, ତିନ ତିନଟା ବାଘ ଆଣି ଏକାଠି ପଞ୍ଜୁରୀରେ ପୂରାଇ ରଖିଛି ।" —ଏହିକଥା ସେତେବେଳେ ଅଧିକାଂଶ ଲୋକ କହୁଥିଲେ ।

ତିନଟା ବାଘ କିଏ ଜାଣିଛ ? ସେତେବେଳକାର ତିନିଜଣ ଉଚ୍ଚଶିକ୍ଷିତ ଯୁବକ । ପାଠରେ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଉପାଧି ପାଇଥାନ୍ତି । ସେହି ତିନିଜଣ ହେଲେ ପଣ୍ଡିତ ନୀଳକଣ୍ଠ ଦାଶ, ପଣ୍ଡିତ ଗୋଦାବରୀଶ ମିଶ୍ର ଏବଂ ପଣ୍ଡିତ କୃପାସିନ୍ଧୁ ମିଶ୍ର । ପ୍ରତ୍ୟେକେ ଏମ୍. ଏ. ପାଶ୍ କରିଥିଲେ । ପାଠରେ ପଣ୍ଡିତ ଥିଲେ । ଜ୍ଞାନରେ ଆଉରି ଏକ ମହାଜ୍ଞାନୀ ।

ସେହି ତିନିଜଣ ଇଚ୍ଛା କରିଥିଲେ ବଡ଼ ଚାକିରି କରି ପାରିଥାନ୍ତେ; କିନ୍ତୁ ଦେଶ ପାଇଁ ସେତିକ ତ୍ୟାଗ କଲେ । ପ୍ରକୃତରେ ଉତ୍କଳମଣି ଏକ ପୋଖତ ସର୍କସ ଖେଳାଳୀ ଥିଲେ । ନଚେତ୍ ସତ୍ୟବାଦୀ ବନବିଦ୍ୟାଳୟରେ ରହିବାକୁ ଯେତେବେଳେ ଘରର ଅଭାବ ଥିଲା, ସେତେବେଳେ ଗୋଟିଏ ଛୋଟିଆ କୋଠରୀରେ କେବଳ ପାଞ୍ଚଜଣ ଶିକ୍ଷକ ରହିଲେ ତାହାନୁହେଁ ବରଂ ଗୋଟିଏ ୭ ଫୁଟ ଓ ୭ ଫୁଟ ଚଉଡ଼ା ମଶାରୀ ଭିତରେ ଏକାଠି ବି ପାଞ୍ଚଜଣ ଶୋଇଲେ ।

ଏହାପର କେଉଁ କୁହୁକ ମନ୍ତ୍ର ସେମାନଙ୍କ କାନରେ ଦାସ ଆପଣେ ଫୁଙ୍କି ଦେଲେ ଯେ ସେମାନେ ପାଠ ପଢ଼ାଇବାବେଳେ କେବଳ ଶିକ୍ଷକ ବୋଲି ନିଜକୁ ମନେକଲେ । ଅନ୍ୟ ସମୟରେ ଛାତ୍ରମାନଙ୍କ ସହ କାନ୍ଧରେ କାନ୍ଧ ମିଶାଇ



ବଗିଚାରେ ମାଟି ହାଣିଲେ । ପାଣି ମଡ଼ାଇଲେ । ସ୍କୁଲ ଘର ତିଆରି ପାଇଁ ସମସ୍ତେ ମୁଣ୍ଡରେ ଇଟା ଚୂନ ବୋହିଲେ । ଶିକ୍ଷିତ ଲୋକମାନେ ଯେଉଁ କାମକୁ ଘୃଣା କରୁଥିଲେ ସେହି କାମ କଲେ । ଗାଆଁମାନଙ୍କରୁ ନଡ଼ା, କାଠ, ବାଉଁଶ କୁଲିଙ୍କ ପରି ବୋହିଲେ । ଚାନ୍ଦା ମାଗିବା ପାଇଁ ଧନୀଙ୍କ ଦୁଆରେ ଗୋଡ଼ହାଙ୍ଗି ଠିଆହେଲେ । ମୋଟା ବଗଡ଼ା ଖାଇଲେ । ମାଟିରେ ଶୋଇଲେ । ଖରା ବର୍ଷା ସହିଲେ ।

ସେମାନଙ୍କୁ ଯଦି କେହି କେବେ ଏହି ବିଷୟରେ ପ୍ରଶ୍ନ କରୁଥିଲେ, ସେମାନେ କ'ଣ ଉତ୍ତର ଦିଅନ୍ତି ଜାଣ ? କହନ୍ତି—'ଦାରିଦ୍ର୍ୟ ଓ ସେବାକୁ ଆମେ ଜୀବନର ବ୍ରତ କରିନେଇଛୁ ।'

ଏହିମାନଙ୍କର ତ୍ୟାଗ ପାଇଁ ଓଡ଼ିଶାସାରା ପ୍ରଚାର ହୋଇଗଲା ଯେ, "ସତ୍ୟବାଦୀ ସ୍କୁଲରେ ପଢ଼ୁଥିବା ପିଲାମାନେ ମଣିଷ ହୋଇଯାଉଛନ୍ତି ।" ଫଳରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଛାତ୍ରମାନେ ପଢ଼ିବାକୁ ଆସିଲେ । ଏହି ବନ ବିଦ୍ୟାଳୟର ଛାତ୍ରମାନେ କେବଳ ଭଲ ପାଠ ପଢ଼ୁଥିଲେ ତାହାନୁହେଁ, ବରଂ ପାଠପଢ଼ିବା ସଙ୍ଗେ ସଙ୍ଗେ ବଗିଚା କାମ, ଗ୍ରାମ ସଫେଇ ଏବଂ ପୁରୀ ରଥଯାତ୍ରା ସମୟରେ ହଇଜା ଓ ମହାମାରୀ ଲାଗିଲେ ସ୍ୱେଚ୍ଛାସେବକ ହୋଇ କାମ କରୁଥିଲେ ।

ଇଂରେଜ ସରକାରଙ୍କର ଏହି ବନ ବିଦ୍ୟାଳୟ ପ୍ରତି ଏକ କୋପଦୃଷ୍ଟି ପଡ଼ିଲା । ହାକିମମାନେ ସେତେବେଳେ ସନ୍ଦେହ କରୁଥିଲେ ଯେ ଏହିଠାରେ ବୋଧହୁଏ ସରକାରଙ୍କ ବିରୁଦ୍ଧରେ ଏକ ଷଡ଼ଯନ୍ତ୍ର ଚାଲିଛି । ତେଣୁ ସ୍କୁଲକୁ ମଞ୍ଜୁରୀ ମିଳିବା କଷ୍ଟକର ହେଉଥାଏ । ପଣ୍ଡିତ ଉତ୍କଳମଣି ସ୍କୁଲ ମଞ୍ଜୁରୀ ପାଇଁ ସେତେବେଳେ ପାଟନାଠାରୁ କଲିକତା ପର୍ଯ୍ୟନ୍ତ ଧାଁଦଉଡ଼ ଲଗାଇଥାନ୍ତି ।

ଭଲ କାମଟିଏ କଲେ ଅବଶ୍ୟ ଅନେକ ବାଧା ଉପୁଜିଥାଏ । ଶେଷରେ ସରକାର ମଞ୍ଜୁରୀ ପାଇଁ ତଦନ୍ତ କରିବାକୁ ଜଣେ ଅଫିସରଙ୍କୁ ପଠାଇଲେ ।

ସବୁ ସରକାରୀ କର୍ମଚାରୀ ସେତେବେଳେ ସରକାରଙ୍କର ଭକ୍ତ ଥିଲେ । ତେଣୁ ସରକାରଙ୍କର ମତ ବିରୁଦ୍ଧରେ କାର୍ଯ୍ୟ କରିବାକୁ କେହି ସାହସ କରିପାରୁ

ନ ଥିଲେ । ସେଥିପାଇଁ ତଦନ୍ତକାରୀ ଅଫିସରଙ୍କୁ ଜଣେ ବନ୍ଧୁ ତାଙ୍କର ପ୍ରଶ୍ନ କଲେ—କ'ଣ ରିପୋର୍ଟ ଦେବ ?

—"ଯାହା ସତ୍ୟ ତାହା ଲେଖିବି ।" ଅଫିସର ଜଣକ କହିଲେ ।

—"ସତ୍ୟ ଲେଖିଲେ ଯଦି ତୁମର ଚାକିରି ଚାଲିଯାଏ ?"

—"ମୁଁ ଚାକିରି କରିଛି ବୋଲି ମୁଣ୍ଡ ବିକିନାହିଁ । ମୁଁ ମୋ ବିବେକ ଅନୁସାରେ ଯାହା ଭଲ ବୁଝିବି, ତାହା କରିବି । ଚାକିରି ରହିଲେ ରହୁ, ଗଲେ ଯାଉ । ଚାକିରି ସିନା ନେଇଯିବେ ମୋର ଗଙ୍ଗା କୂଳରେ "ପାଣି" ଧରି ବସିବା ଅଧିକାର କିଏ ଛଡ଼ାଇ ନେଇଯିବ ?" ହାକିମ ଜଣକ ଦମ୍ଭର ସହିତ କହିଲେ ।

ହଠାତ୍ ସେଉଁଟନ ସ୍କୁଲର ମଞ୍ଜୁରୀ ଆଦେଶ ଆସି ପହଞ୍ଚିଲା ସେତେବେଳେ ଆଶ୍ଚର୍ଯ୍ୟରେ ସମସ୍ତଙ୍କ ଆଖି ତାଳୁରେ ଖୋସି ହୋଇଗଲା ।

ଏହି ହାକିମଙ୍କ ନାମ ରମାବଲ୍ଲଭ ମିଶ୍ର ।

---

## ମୃଦଙ୍ଗ କାହାଳୀ ବାଜେ, ବାଜେ ପୁଣି ଘଣ୍ଟ
## ଧର୍ମ ନୃତ୍ୟ-ରତ ଆହା ଯେତେ ସବୁ ଷଣ୍ଢ !

ସତ୍ୟବାଦୀ ପାଖରେ ବୀର ରାମଚନ୍ଦ୍ରପୁର ବୋଲି ଗୋଟିଏ ବ୍ରାହ୍ମଣ ଶାସନ ଅଛି । ଥରେ ସେଠାରେ ଏକ ଅଘଟନକ କାଣ୍ଡ ଘଟିଲା । ଗାଆଁ ସାରା କ'ଣ ଆଖପାଖ ସାହିବସ୍ତିରେ ଏହା ନିଆଁ ଲାଗିଲା ପରି ଚହଟି ଗଲା ।

କଥାରେ କହନ୍ତି ଚମ ବାଇଦ ସିନା କୋଶେ ଶୁଭେ; କିନ୍ତୁ ତୁଣ୍ଡ ବାଇଦ ସହସ୍ର କୋଶକୁ ଶୁଭେ ।

ସେହିଭଳି ତୁଣ୍ଡରୁ କାନକୁ ହୋଇ ପ୍ରଘଟ ହୋଇଗଲା ଯେ, ବୀର ରାମଚନ୍ଦ୍ରପୁରରେ ପାତାଳରୁ ଫୁଟି ଶିବଲିଙ୍ଗ ବାହାରିଛନ୍ତି । ଆଖପାଖ ଲୋକମାନେ ଏହିକଥା ଶୁଣି ଦେଖିବାକୁ ଦଉଡ଼ିଲେ । ସେବକମାନେ ସମସ୍ତ ଲୋକଙ୍କୁ ଦେଖାଇ କହିଲେ ଯେ, ଏହି ଶିବଲିଙ୍ଗ କେତକୀ ବୁଦା ଭିତରେ ଥିବା ଉଇ ହୁଙ୍କାବାଟେ ପାତାଳରୁ ଫୁଟି ବାହାରିଛନ୍ତି ।

ସମାଜରେ ଦଳେ ଲୋକ ସଦାବେଳେ ଏହି କଥାକୁ ବିଶ୍ୱାସ କରିବା ଏବଂ କରାଇବା ପାଇଁ ରହିଆସିଛନ୍ତି । ଅଳ୍ପ ଦିନ ପ୍ରଚାର ଫଳରେ ବୀର ରାମଚନ୍ଦ୍ରପୁରରେ ଲୋକମାନଙ୍କ ଭିଡ଼ ଜମି ଉଠିଲା । କିଏ କହିଲା, ସେହି ପାତାଳ

ଫୁଟା ଶିବଙ୍କ କୃପାରୁ ଛୋଟା ଗୃଲଲାଣି ତ, କେତକ ପ୍ରଗୃର କଲେ ଅନ୍ଧ ଚକ୍ଷୁଦାନ ପାଇଲାଣି ।

ଏହିଭଳି ପ୍ରଗୃର ଫଳରେ କୁଷ୍ଠ ଓ ଅର୍ଶ ପ୍ରଭୃତି ରୋଗରେ ବନ ବନ ଧରି କଷ୍ଟ ଭୋଗୁଥିବା ସାଙ୍ଘାତିକ ରୋଗୀମାନେ ଏହି ଶିବଲିଙ୍ଗ ନିକଟରେ ଅଧିଆ ପଡ଼ିଲେ । ଗୃଲିଲା ପୂଜା । ବାଜିଲା ଘଣ୍ଟା । ଏତେ ଭୋଗରାଗ ହେଲା ଯେ ଗାଆଁଟା କେବଳ ସେବକମାନେ ଭୋଗରୁ କାଢ଼ି ରଖିଥିବା 'ଚଣ୍ଡି'ରେ ପୂରିଗଲା । ସେବକମାନଙ୍କର ବେଶ୍ ଦୁଇ ପଇସା ରୋଜଗାର ବି ହେଲା ।

ଏ ଖବର ପାଇ ଏବଂ ପ୍ରତିଦିନ ଶହ ଶହ ଲୋକଙ୍କୁ ଭୋଗରାଗ ଧରି ଫେରୁଥିବାର ଦେଖି ସତ୍ୟବାଦୀ ବନ ବିଦ୍ୟାଳୟର ତିନିଜଣ ଶିକ୍ଷକ ଘଟଣା ଦେଖିବାକୁ କୌତୂହଳବଶତଃ ଗଲେ ।

ଏହି ତିନିଜଣ ଶିକ୍ଷକ ହେଉଛନ୍ତି—ଆଚାର୍ଯ୍ୟ ହରିହର, ପଣ୍ଡିତ ନୀଳକଣ୍ଠ ଏବଂ ପଣ୍ଡିତ ଗୋଦାବରୀଶ । ସେମାନେ ସେହିଠାରେ ପହଞ୍ଚି ଦେଖିଲେ ଯେ, ଭୋଗରାଗ ଗୃଲିଛି । ସେବକମାନଙ୍କୁ କଥା କହିବାକୁ ଫୁରସତ୍ ନାହିଁ ।

ହଠାତ୍ ଗୋଦାବରୀଶଙ୍କ ତୁଣ୍ଡରୁ ବାହାରି ପଡ଼ିଲା—"ଏସବୁ ଖାଲି ଭଣ୍ଡାମି ।"

ତାହାଙ୍କ ପାଟିରୁ ଏତିକି ଟିକିଟି ବାହାରି ପଡ଼ୁଛି ନା ଆଉ ସେବକମାନଙ୍କ ରାଗ ଦେଖ । ସେମାନେ କହିବାକୁ ଲାଗିଲେ ଇଂରେଜି ପାଠ ପଢ଼ିଲେ କ'ଣ ଲୋକମାନେ ଧର୍ମକୁ ସୁଦ୍ଧା ବିଶ୍ୱାସ କରନ୍ତି ନାହିଁ ! ଆମେମାନେ ଅଭିଶାପ ଦେଉଛୁ ତୁମକୁ ନିଶ୍ଚୟ କାଳସର୍ପ ଦଂଶନ କରିବ । ତୁମକୁ କୁଷ୍ଠ ବ୍ୟାଧି ହେବ ।

ପଣ୍ଡିତ ଗୋଦାବରୀଶ କିନ୍ତୁ ସେବକମାନଙ୍କର କଥାରେ ଆଦୌ ବିଚଳିତ ହେଲେ ନାହିଁ । ସେ ଭଲକରି ଜାଣନ୍ତି ଗରମ ପାଣିରେ ଘର ପୋଡ଼ିଯାଏ ନାହିଁ । ତେଣୁ ସେ ଦାବୀ କଲେ ଯେ ସେ ଏହାକୁ ମିଛ ବୋଲି ପ୍ରମାଣ କରିଦେଇ ପାରିବେ ।

ସେବକମାନେ ତଥାପି ମୁହଁ ଭୁରୁଡ଼ିମାରି ଭକ୍ତମାନଙ୍କୁ କହୁଥାନ୍ତି ଯେ ଶିବଲିଙ୍ଗ ପାତାଳରୁ ଫୁଟି ବାହାରିବନ୍ତି ।



ପଣ୍ଡିତ ଗୋଦାବରୀଶ ଆଉ ସମ୍ଭାଳି ପାରିଲେ ନାହିଁ । ସେ ହାତରେ ବାଡ଼ି ଖଣ୍ଡିଏ ଧରି ଉଇହୁଙ୍କା ଭିତରେ ଗଳାଇ ଶିବଲିଙ୍ଗଟିକୁ ସାମାନ୍ୟ ଟେକି ଦେଲେ ।

ସେବକମାନେ ଆଶା କରିଥିଲେ ଯେ ତାଙ୍କର ଭୁରୁଡ଼ି ଶୁଣି ମାଷ୍ଟ୍ରେ

ନଷ୍ଟହୃ ଭୟରେ ଥରହର ହୋଇ ବିଦ୍ୟାଳୟକୁ ଫେରିପିବେ; କିନ୍ତୁ ମାଷ୍ଟ୍ରଙ୍କର ଦୁଃସାହସ କାର୍ଯ୍ୟ ଦେଖି ସେମାନଙ୍କର ହୋସ୍ ଉଡ଼ିଗଲା ।

ସେମାନେ ଛାନିଆଁ ହୋଇ ପଣ୍ଡିତ ଗୋଦାବରୀଶଙ୍କ ଗୋଡ଼ତଳେ ଲମ୍ବ ଲମ୍ବ ହୋଇ ପଡ଼ିଗଲେ । କଥାଟା କପରି ଆଉ ପ୍ରଘଟ ନ ହୁଏ ସେଥିପାଇଁ ପ୍ରାର୍ଥନା କଲେ ।

ଗୋଦାବରୀଶ ଅବଶ୍ୟ କଥାଟା ପ୍ରଘଟ କଲେ ନାହିଁ; କିନ୍ତୁ ଆସ୍ତେ ଆସ୍ତେ ଭକ୍ତଙ୍କ ସଂଖ୍ୟା କମିଗଲା । କେତେକା ବୁଢା ନିକଟ ଉଇହ୍ନଙ୍କା ନିକଟରେ ଆଉ ସେବକମାନଙ୍କର ଘଣ୍ଟ ବାଜିଲା ନାହିଁ ।

ପିଲାମାନେ; ବର୍ତ୍ତମାନ ତୁମେ ଜାଣିପାରିଲ ଯେ ପଣ୍ଡିତ ଗୋଦାବରୀଶ କେବଳ ଶିକ୍ଷକ ନ ଥିଲେ ! ସେ ମଧ୍ୟ କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଭଲପାଉ ନ ଥିଲେ । ବ୍ରାହ୍ମଣ ସମାଜରେ ଝିଅମାନଙ୍କୁ କେହି ପାଠ ପଢ଼ାଉ ନଥିଲେ । ସେ କେବଳ ଏକମାତ୍ର ବ୍ରାହ୍ମଣ ଯିଏକି ପ୍ରଥମେ ତାଙ୍କ ଝିଅକୁ ଆଣି କଟକ ବାଳିକା ସ୍କୁଲରେ ନାମ ଲେଖାଇଥିଲେ । ବ୍ରାହ୍ମଣ ହୋଇ ସେ ନିଶ ରଖିଥିଲେ ! କାହାର ସମାଲୋଚନାକୁ ସେ ଖାତିର କରୁ ନ ଥିଲେ ।

---

## ଯେ ହାଟକରେ ପରହୋଇ
## ତା ଠାରୁଁ ବନ୍ଧୁ ଅନ୍ୟ ନାହିଁ ॥

ମୁଣ୍ଡରେ ଗୋଟାଏ ଠେକା । ତାହା ଉପରେ ବୋଝେ ବାଇଗଣ । କଳା ମୁଚୁ ମୁଚୁ । କଅଁଳ ଛନ୍ଦନ୍ଦ । ଦେଖିଲେ ଲୋଭ ହୁଏ । ଲୋକଟି ବାଇଗଣ ଧରି ବିକି ବାହାରିଛି ।

ରାସ୍ତାରେ ଯାଉଥିଲେ ନୂଆ ହୋଇ ସେହି ଅଞ୍ଚଳକୁ ଆସିଥିବା ହେଡ୍‌ମାଷ୍ଟର ବାବୁ । ବାଇଗଣକୁ ଦେଖି ଲୋଭ ବଳିଲା । ପଚାରିଲେ ବାଇଗଣ ଦେବୁ ?

ଆଗ "କ'ଣ ମାଷ୍ଟ୍ରଙ୍କୁ" ଦେଇ ବନ୍ଦନ କଲାପରେ ଦେବି । ତୁମେ ମୋ ସାଙ୍ଗରେ ଆସୁନ, ସେହିଠାରୁ ନେଇଯିବ ।

ହେଡ୍‌ମାଷ୍ଟ୍ର ବାଇଗଣବାଲାଟିର କଥା ଶୁଣି ଟିକିଏ ଚକିତ ହେଲେ । ମନେ ମନେ ଭାବିଲେ ଏଇ ଅଞ୍ଚଳରେ ସେ ତ ଏକମାତ୍ର ଶିକ୍ଷକ ରହୁଛନ୍ତି । ଆଉ ଜଣେ କିଏ ଶିକ୍ଷକ ଅଛନ୍ତି ଅଥଚ ସେ ତାହାଙ୍କୁ ଜାଣି ନାହାଁନ୍ତି ! ମନେ ମନେ ଠିକ୍ କଲେ ବାଇଗଣବାଲା ସାଙ୍ଗରେ ଗଲେ ନୂଆ ମାଷ୍ଟ୍ରଙ୍କ ସହିତ ଚିହ୍ନା ପରିଚୟ ହେବ, ତାହା ସଙ୍ଗେ ସଙ୍ଗେ ଏହିଭଳି ସଜ ବାଇଗଣରୁ କିଛି କିଣି ହେବ ।

ବାଇଗଣବାଲା ଓ ମାଷ୍ଟ୍ରବାବୁ ଏକାଠି ଗ୍ଲଲେ ମାଷ୍ଟ୍ରଙ୍କ ଘରକୁ ।

କିଛିସମୟ ପରେ ବାଇଗଣବାଲା ମାଷ୍ଟ୍ରଙ୍କ ବସାଘର ଦୁଆରଠାରେ ଯାଇ ପହଞ୍ଚି ଝଞ୍ଜିର ଝଣ୍ ଝଣ୍ କଲା ।

ଘର ଭିତରୁ ବାହାରି ଆସିଲା ତାଙ୍କର ଚାକର । ମାଷ୍ଟ୍ରଙ୍କୁ ବାଇଗଣବାଲା ସଙ୍ଗତରେ ଦେଖି ପଚାରିଲା, ଆଜ୍ଞା ଫେରି ଆସିଲେ ?



ବ୍ୟସ୍ତହୋଇ ବାଇଗଣବାଲା କହିଲା, ଏଇବାବୁ ବାଇଗଣ କିଣିବାକୁ କହୁଥିଲେ । ମୁଁ କିନ୍ତୁ କହିଲି କ'ଣ ମାଷ୍ଟ୍ରଙ୍କ ହାତ ଆଗ ବଢ଼ିନା ନ କଲେ ଦେବି ନାହିଁ । ତୁମେ ଶୀଘ୍ର ଜାଗା ଆଣି ବାଇଗଣ ରଖିଲ ।

ଚାକର ଫେଁ କରି ହସିଦେଲା ।

ଚାକର ଏହିପରି ହସିବାରୁ ବାଇଗଣବାଲା ଏବଂ ମାଷ୍ଟ୍ରେ କେହି କିଛି ବୁଝି ପାରିଲେ ନାହିଁ । ଦୁହିଁଙ୍କି ଦୁହେଁ ବୋକାଙ୍କ ଭଳି ଚାହିଁ ରହିଲେ ।

ହସୁ ହସୁ ଚାକର କହିଲା, କ'ଣ ମାଷ୍ଟ୍ରେ ପରି ତୋ ସାଙ୍ଗରେ ଆସିଛନ୍ତି ?

ହାତେ ଲମ୍ବର ଜିଭ କାମୁଡ଼ି ବାଇଗଣବାଲା କହିଲା—ତୁମେ ତ ସବୁଦିନ ମୋହଠାରୁ ପରିବା ରଖ । ଅନେକାଳେ ତ ଏ ବାବୁଙ୍କୁ ମୁଁ ଦେଖିନାହିଁ । ମୁଁ କିପରି ଜାଣିବି ଏଇ ହେଉଛନ୍ତି ମାଷ୍ଟ୍ରବାବୁ !

ମାଷ୍ଟ୍ରେ ଆହୁରି ବିସ୍ମିତ ହୋଇଉଠିଲେ । ତାଙ୍କ ନାମ ଗୋଦାବରୀଶରୁ ଯେ କେତେବେଳେ କ'ଣ ହେଲାଣି ସେ ଜାଣିପାରି ନାହାଁନ୍ତି ।

ଗୃହକର୍ତ୍ତି କହିଲା—ଆଜ୍ଞା ଆମ ଏଆଡ଼ ଭାଷା ଆଉ ଆପଣଙ୍କ ଭାଷା ଅଲଗା । ଆମେ "କି ଖାଉଛ" "କି ପଢ଼ୁଛ" କହୁଥିଲାବେଳେ ଆପଣ "କ'ଣ ପଢ଼ୁଛ" "କ'ଣ କରୁଛ" କହୁଛନ୍ତି । ତେଣୁ ମୁହଁରେ ସିନା ଆପଣଙ୍କୁ କେହି କିଛି କହୁନାହାଁନ୍ତି; କିନ୍ତୁ ଆପଣଙ୍କ ବଙ୍କା ଭାଷାପାଇଁ ସମସ୍ତେ ଆପଣଙ୍କୁ ଏହିପରି ଚିହ୍ନନ୍ତି ।

ଏତକ ଶୁଣି ଗୋଦାବରୀଶ ହସିଦେଲେ । କହିଲେ ଯାହାହେଉ ବାଟରେ ଦେଉଳ ନ ତୋଳିଲେ ମଧ୍ୟ କେତେକଙ୍କର ନାଆଁ ପଡ଼େ । ନଈକେ ବାଙ୍କ୍ ଦେଶକେ ଫାଙ୍କ୍ ତ ଅଛି ।

ସବୁଦିନ ସମାନ ନ ଥାଏ । ସତ୍ୟବାଦୀ ବନ ବିଦ୍ୟାଳୟରେ ସେତେବେଳେ ଦୁର୍ଦ୍ଦିନ ଦେଖାଯାଇଥାଏ । ଯେଉଁ ଶିକ୍ଷକମାନେ ଅନେ ମୁଣ୍ଡରେ ଇଟା ବୋହି ଥିଲେ; ଗୋଟିଏ ମଶାରୀରେ ଶୋଇଥିଲେ, ସେହିମାନଙ୍କ ଭିତରେ ମନର ମେଳ

ଆଉ ରହିଲା ନାହିଁ । ପଣ୍ଡିତ ଗୋପବନ୍ଧୁ ଦେଖିଲେ ଏହି ସ୍ଥାନରୁ ଜଣେ ଦୁଇଜଣ ଶିକ୍ଷକଙ୍କୁ ଅନ୍ୟତ୍ର ନ ନେଲେ ଶାନ୍ତି ଆସିବ ନାହିଁ ।

ସମସ୍ତଙ୍କ ଭିତରେ ଗୋଦାବରୀଶବାବୁ କେବଳ ବ. ଟି. ଟ୍ରେନିଂ ପାଶ୍ କରିଥିଲେ । ତାହାଙ୍କୁ ସତ୍ୟବାଦୀରୁ ସ୍ଥାନାନ୍ତରିତ କରିବା ପାଇଁ ଗୋପବନ୍ଧୁ ଆଦୌ ଚାହୁଁ ନ ଥିଲେ; କିନ୍ତୁ ସିଂହଭୂମିରେ ଓଡ଼ିଆମାନଙ୍କ ଭିତରେ ଜାଗରଣ ସୃଷ୍ଟି କରିବା ପାଇଁ ତାଙ୍କ ବ୍ୟତୀତ ଆଉ କାହାକୁ ସେ ଉତ୍ତମ ମନେକରି ପାରିଲେ ନାହିଁ ।

ଗୋଦାବରୀଶ ଗୁରୁଙ୍କ ଆଦେଶ ଶିରରେ ବହନ କରି ସିଂହଭୂମିରେ ଓଡ଼ିଆ ଭାଷାଭାଷୀମାନଙ୍କ ଭିତରେ ସଂଗଠନ ଆରମ୍ଭ କଲେ ।

ଓଡ଼ିଆ ଶିକ୍ଷକ ହେଲେ ମଧ୍ୟ ସେ ତାଙ୍କର ବ୍ୟବହାର ଓ ଚାଲିଚଳଣରେ ସମସ୍ତଙ୍କର ପ୍ରିୟ ହୋଇପାରିଥିଲେ । ସମସ୍ତେ ତାଙ୍କୁ ସମ୍ମାନ କରୁଥିଲେ । ଏପରିକି ମାରୁଆଡ଼ୀ, ହିନ୍ଦୁସ୍ଥାନୀମାନେ ପୂଣ୍ୟପର୍ବରେ ତାହାଙ୍କ ପାଖକୁ ପିଠାପଣା ମଧ୍ୟ ପଠାଉଥିଲେ ।

---

ପ୍ରାଣୀର ଭଲ ମନ୍ଦ ବାଣୀ
ମରଣ କାଳେ ତାହା ଜାଣି ॥

X X X

ଭଲକର ନାଆ ବୁହାରେ ନାଉରୀ
ଝିଅଲୁ ମାଡ଼ୁଛି ଡର
ଗଡ଼େ ଗଡ଼ ଲୋକେ ଚାହିଁ ବସିଥିବେ
ଝିଅ ଯିବ ଶାଶୁଘର ॥ ୧ ॥

ପିଲମାନେ, ଏଇ ଗୀତଟିକୁ ତୁମେମାନେ ରେଡ଼ିଓ କିମ୍ବା ତୁମ ବିଦ୍ୟାଳୟର ପୁରସ୍କାର ବିତରଣୀ ଉତ୍ସବରେ ପ୍ରାୟ ଶୁଣିଥିବ । ଏକା ତୁମମାନଙ୍କୁ ନୁହେଁ, ଅଧିକାଂଶଙ୍କୁ ଏହି କବିତାଟି ଶୁଣିବାକୁ ଭଲ ଲଗେ । ଏହାକୁ କିଏ ଲେଖିଥିଲେ ଜାଣ ? ସେ ହେଉଛନ୍ତି ପଣ୍ଡିତ ଗୋଦାବରୀଶ ।

ପଣ୍ଡିତ ଗୋଦାବରୀଶ କେବଳ ଏହିଭଳି ଗୋଟିଏ କବିତା ଲେଖି ନ ଥିଲେ । ଓଡ଼ିଶାକୁ ସେ ଏତେ ଭଲ ପାଉଥିଲେ ଯେ, ଜନ୍ମଭୂମିର ପୁରୁଣା କାହାଣୀକୁ ନେଇ ଅନେକ କବିତା, ଗଳ୍ପ, ଉପନ୍ୟାସ, ନାଟକ ସେ ଲେଖି ଯାଇଛନ୍ତି । ତାଙ୍କର ଦ୍ୱାରା ଲିଖିତ ଅନେକ ପୁସ୍ତକ ପାଠ୍ୟପୁସ୍ତକ ରୂପେ ବହୁଦିନ ଧରି ଓଡ଼ିଶାର ସ୍କୁଲ, କଲେଜମାନଙ୍କରେ ଚଳି ଆସିଥିଲା ।

ସେ ଜଣେ ସୁ-ଲେଖକ ଥିଲେ । ସେଥିପାଇଁ ତାଙ୍କର ଆତ୍ମଜୀବନୀ "ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ" ଓଡ଼ିଆ ସାହିତ୍ୟରେ ଶ୍ରେଷ୍ଠ ପୁସ୍ତକ ରୂପେ ବିବେଚିତ ହୋଇ ଭାରତ ସରକାରଙ୍କଠାରୁ ପାଞ୍ଚହଜାର ଟଙ୍କା ପୁରସ୍କାର ପାଇଥିଲା ।

ପଣ୍ଡିତ ଗୋଦାବରୀଶଙ୍କ ଜୀବନୀରୁ କାହାଣୀମାନ ଖୋଜି ଲେଖିବସିଲେ ବଡ଼ ପୋଥିଟିଏ ହେବ । ସେ କେବଳ ଶିକ୍ଷକ କିମ୍ବା ଲେଖକ ନ ଥିଲେ । ସେ ଜଣେ ନେତା ଥିଲେ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାପରେ ଓଡ଼ିଶାଠାରୁ ଅଲଗା ହୋଇ ରହିଯାଇଥିବା ଅଞ୍ଚଳକୁ ପୁଣି ଓଡ଼ିଶାରେ ମିଶାଇବା ପାଇଁ ସେ ନେତୃତ୍ୱ ନେଇଥିଲେ ।

ଓଡ଼ିଶାରେ ଯେତେବେଳେ ପ୍ରଥମକରି ମନ୍ତ୍ରୀମଣ୍ଡଳ ଗଠିତ ହେଲା ତହିଁରେ ସେ ମନ୍ତ୍ରୀରୂପେ କାର୍ଯ୍ୟ କରିଥିଲେ । ତାହାପରେ ସେ ଅନେକଥର ମନ୍ତ୍ରୀ ହୋଇଛନ୍ତି । ତାଙ୍କରି ଚେଷ୍ଟାରେ ଓଡ଼ିଶାରେ "ଉତ୍କଳ ବିଶ୍ୱବିଦ୍ୟାଳୟ" ପ୍ରତିଷ୍ଠା ହୋଇପାରିଥିଲା । ଆଜି ଯେଉଁ ଶ୍ରୀରାମ ଚନ୍ଦ୍ର ଭଞ୍ଜ ମେଡ଼ିକାଲ କଲେଜ ସମଗ୍ର ଓଡ଼ିଶାରେ ବଡ଼ ଡାକ୍ତରଖାନା ରୂପେ ଅଭିହିତ ଏବଂ ଯେଉଁ ହାଇକୋର୍ଟ ଦେଖୁଛ ଏସବୁ ତାଙ୍କରି ପ୍ରଗାଢ଼ ଉଦ୍ୟମର ଫଳ ।

ଜୀବନରେ ସେ କଦାପି ଅନ୍ୟାୟ ପାଖରେ ମୁଣ୍ଡ ନୁଆଁଇ ନାହାଁନ୍ତି । ଯାହା ଠିକ୍ ମନେ କରିଛନ୍ତି ତାହା କରିଯାଇଛନ୍ତି । ସେ କିଭଳି ନିର୍ଭୀକ ଥିଲେ ତାହା ସେ ମନ୍ତ୍ରୀ ଥିଲାବେଳର ଗୋଟିଏ ଘଟଣାରୁ ଜଣାପଡ଼େ ।

ସେ ମନ୍ତ୍ରୀ ଥିଲାବେଳେ ଜଣେ ଆଇ. ସି. ଏସ୍. ଅଫିସରଙ୍କର ଫାଇଲ୍‌ରେ ଭୁଲ୍ ଇଂରାଜୀ ବନାନ ଦେଖି ତାହାତଳେ ନାଲି କାଳିରେ ଗାର ଟାଣି ମନ୍ତବ୍ୟ ଲେଖିଥିଲେ—"ଜଣେ ଇଂରେଜ୍ ସେକ୍ରେଟେରୀ ପାହ୍ୟାର ଅଫିସରଙ୍କଠାରୁ

ଶୁଦ୍ଧ ଇଂରାଜୀ ଆଶା କରିବା ସ୍ୱାଭାବିକ । ମାତ୍ର ସେ ଆଶା ମୋର ବ୍ୟର୍ଥ ହୋଇଛି ।"

ଜୀବନର ଆରମ୍ଭରୁ ପର୍ଯ୍ୟନ୍ତ କଂଗ୍ରେସର ସେ ଜଣେ କର୍ମୀ ଥିଲେ; କିନ୍ତୁ ଯେତେବେଳେ କଂଗ୍ରେସ ଭିତରେ ସେ ଅନୀତି ଦେଖିଲେ ସେତେବେଳେ ପଦ, ପଦବୀର ମୋହ ଛାଡ଼ି ସେ କଂଗ୍ରେସ ତ୍ୟାଗ କରିଥିଲେ ।

ପଣ୍ଡିତ ଗୋଦାବରୀଶ ଛୋଟରୁ ବଡ଼ ହୋଇଥିଲେ । ତେଣୁ ଗରିବ ଲୋକଟିଏ ଦେଖିଲେ ତାଙ୍କ ଆଖି ଲୁହରେ ଛଳ ଛଳ ହୋଇଯାଏ । ସେ ତାହାକୁ ନିଜର ସାଧ୍ୟମତେ ସାହାଯ୍ୟ କରନ୍ତି । ନିଜେ ପିଲାଦିନେ ବିଦ୍ୟାଳୟଟିଏ ନ ଥିବାରୁ ପାଠ ପଢ଼ିବାକୁ ବହୁତ କଷ୍ଟ ଅଙ୍ଗେ ନିଭାଇଛନ୍ତି । ତେଣୁ ଓଡ଼ିଶାରେ କିପରି ବେଶୀ ପିଲା ପାଠ ପଢ଼ନ୍ତି, ଅଧିକ ସ୍କୁଲ କଲେଜ ହେଉ ତାଙ୍କ ବ୍ୟତୀତ ଏତେ କେହି ଭାବୁ ନ ଥିଲେ । ପଦେ କଥାରେ କହିଲେ ସେ ଜଣେ ଖାଣ୍ଟି ଓଡ଼ିଆ ଥିଲେ ।



ଏହି ଉଦାରଚେତା ମହାପୁରୁଷ, ଯିଏକ ଓଡ଼ିଶାର ପାଣି ପବନକୁ ଏତେ ଭଲ ପାଉଥିଲେ, ସେ ଉଣେଇଶିଶହ ଛପନ ମସିହା ଜୁଲାଇ ମାସ ଛବିଶ ତାରିଖ ଦିନ ଓଡ଼ିଆ ଜାତି ଆଖିରେ ଲୁହ ଭରଦେଇ ସବୁଦିନ ପାଇଁ ଇହଧାମରୁ ବିଦାୟ ନେଇଗଲେ ।

———